ସଚିତ୍ର

# ପୁରାଣ କଥା

( ପ୍ରଥମ ଭାଗ )

ଜନୈକ ଶିକ୍ଷକଙ୍କ ପ୍ରଣୀତ

# PURANAKATHA.

[ Part 1 ]

BY

***An experienced Teacher.***

---

Published By

The Students' Store

Berhampore.

ପ୍ରଥମ ସଂସ୍କରଣ

1925

ମୂଲ୍ୟ ଦୁଇଅଣା ମାତ୍ର । Price Re 0-2-0

Jeypore

**Classics**

(ଛୋଟ ପିଲାଙ୍କ ପାଇଁ ଓଡ଼ିଆ, [redacted] ଓ ତେଲୁଗୁ ପୁସ୍ତକ )

---

୧ ଗୋପଲୀଳା। ଶ୍ରୀ ଦାମୋଦର ମିଶ୍ର ।
ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ଅତି ସରଳ ଭାଷାରେ ରଚିତ । ପୁସ୍ତକରେ କେତୋଟି ସୁନ୍ଦର ଚିତ୍ର ଦିଆ ଯାଇଛି । ମଲାଟ ଉପରେ ବଡ଼ ସୁନ୍ଦର ତ୍ରିବର୍ଣ୍ଣ ଛବି । ଠ ୦ ।/

୨ ପୁରାଣକଥା ୧ମ ଭାଗ ଜଣେ ଅନୁଭବୀ ଶିକ୍ଷକଙ୍କ ଦ୍ୱାରା ପ୍ରଣୀତ ।
ଏହା ଶିକ୍ଷାଗର୍ଭ ନୀତିପ୍ରଦ ପୁରାଣ ଚରିତ୍ରରେ ପୂର୍ଣ୍ଣ । ଭାଷା ବଡ଼ ସରସ, ସହଜ । ନଂଖଣ୍ଡ ଛବି ଦିଆ ଯାଇଛି । ଏହା ପାଠ କରି ଛୋଟ ବାଳକ ବାଳିକାମାନେ ଆନନ୍ଦ, ସଙ୍ଗେ ସଙ୍ଗେ ଧର୍ମଶିକ୍ଷା ପାଇବେ । ଠ ୦ ୵

୩. ପୁରାଣକଥା ୨ୟ ଭାଗ ,, ,, ,, ଠ ୦ ୵୬

୪ ବେତାଳ ପଞ୍ଚବିଂଶତି ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ (ଯନ୍ତ୍ରସ୍ଥ)

୫ ମାର୍କଣ୍ଡେୟ ,, ,,
ବଡ଼ ସରସ ସୁବୋଧ ଭାଷାରେ ଶିଶୁ ମାର୍କଣ୍ଡେୟଙ୍କର ଭକ୍ତି ଈଶ୍ୱରନିଷ୍ଠା ଫୁଟାଇ ଦିଆ ଯାଇଛି । ଠ ୦ ୵୬

୬ Stories from Vetalapanchavinsati,
by Ram Chandra Acharya. As 3.

୭ Seeta, by Godavarish Misra, M.A., B.T.

୮ Sishubhaktulu ( Telugu ),
by Pandit D. N. Sharma ( In the Press)

***The Students' store.***
Berhampore ( GANJAM. )



# ପୁରାଣ କଥା



## ପ୍ରଦ୍ୟୁମ୍ନ

କାମଦେବ ସ୍ୱର୍ଗର ଦେବତା । ତାଙ୍କପରି ସୁନ୍ଦର ଏ ତିନିଭୁବନରେ କେହି ନ ଥିଲେ । ତାଙ୍କ ଭାର୍ଯ୍ୟା ରତି ତାଙ୍କଠୁଁ ବଳି ସୁନ୍ଦର । ଥରେ ମହାଦେବ କ୍ରୋଧରେ କାମଦେବଙ୍କୁ ଆଖି ତରାଟି ଚାହିଁଦେବାରୁ ସେ ପୋଡ଼ି ଜଳି ଗଲେ । ଏହା ଦେଖି ରତି ଦିନରାତି ବଡ଼ ବିକଳ ହୋଇ ବାହୁନି ବାହୁନି କାନ୍ଦିଲେ । ଦେବତାମାନେ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ତୁନି ହୁଅ ମାଁ, ତୁନି ହୁଅ; ଅଳ୍ପ ଦିନ ଭିତରେ ତୁମ ପତି ମର୍ତ୍ତ୍ୟଲୋକରେ ଜନ୍ମ ହେବେ । ସେତେବେଳେ ତୁମର ତାଙ୍କର ଭେଟ ହେବ !"

ସତକୁ ସତ କାମଦେବ, କୃଷ୍ଣ ରୁକ୍ମିଣୀଙ୍କର ପୁଅ ହୋଇ ଜନ୍ମ ହେଲେ । କୃଷ୍ଣ ତାଙ୍କୁ ପ୍ରଦ୍ୟୁମ୍ନ ବୋଲି ନାମ ଦେଲେ । ସେତେବେଳେ ଶମ୍ବରାସୁର ବୋଲି ଗୋଟିଏ ଅସୁର ଥିଲା । ତାକୁ ମହାଦେବ କହିଥିଲେ

କାମଦେବ ପ୍ରଦ୍ୟୁମ୍ନ ରୂପରେ ଜନ୍ମ ହୋଇ ତାକୁ ମାରିବେ । ଏଣୁ ସେ ଛକିଥିଲା । ଯିମିତି ରୁକ୍ମିଣୀଙ୍କର ପୁଅ ହେବାର ଶୁଣିଲା, ସିମିତି ପିଲାଟିକୁ ଚୋରାଇ ନେଇ ସମୁଦ୍ରରେ ଫିଙ୍ଗି ଦେଇ ଚାଲିଗଲା । ପିଲାଟି ପାଣିରେ ପଡ଼ିଲାକ୍ଷଣି ଗୋଟିଏ ବଡ଼ମାଛ ତାକୁ ଝାକୋଳିକରି ଗିଳିଦେଲା । ଦଇବ ଯୋଗରୁ ସେଦିନ ମାଛଟି କେଉଟ ଜାଲରେ ପଡ଼ିଲା । ସେ ନେଇ ତାକୁ ଶମ୍ବରାସୁରର ରନ୍ଧାଘରେ ଦେଇ ଆସିଲା । ସୁଆରମାନେ ତାକୁ କାଟିଲା ବେଳକୁ ତା ପେଟ ଭିତରୁ ଅତି ସୁନ୍ଦର ପିଲାଟିଏ ବାହାରିଲା ।

ସେତେବେଳେ ସେଇ ରନ୍ଧାଘରେ ମାୟାବତୀ ବୋଲି ସ୍ତ୍ରୀଟିଏ ଥିଲା । ସେ ପିଲାଟିକୁ ନେଇ ପାଳିଲା । ସେ ମାଇକିନାଆଟି ଏକା ରତି । ସେ ଆଗରୁ ନାରଦଙ୍କଠାରୁ ଏ କଥା ହେବ ବୋଲି ଜାଣି ଶମ୍ବରାସୁରର ରନ୍ଧାଘରେ ରନ୍ଧୁଣୀ ହୋଇଥିଲେ । ସେ ଏବେ ପିଲାଟିକୁ ବଡ଼ ଆଦରରେ ପାଳିଲେ ।

କ୍ରମେ ପିଲାଟି ବଢ଼ିଲା । ପାଠଶାଠ ପଢ଼ିଲା । ବାହା ହେବାର ବୟସ ଆସି ପହଞ୍ଚିଲା । ସେ ଏକା ପ୍ରଦ୍ୟୁମ୍ନ । ସେତେବେଳେ ମାୟାଦେବୀ ତାଙ୍କୁ ବୁଝାଇ ସବୁକଥା ଗୋଟି ଗୋଟି କରି କହିଲେ । ଶମ୍ବରାସୁର ତାଙ୍କୁ ସମୁଦ୍ରରେ ଫିଙ୍ଗି-ଦେବା,ସେ ମାଛପେଟରୁ ବାହାରିବା କଥା ଶୁଣି ପ୍ରଦ୍ୟୁମ୍ନ ଭାରି ଚିଡ଼ିଲେ । ସେ ମାୟାଦେବୀଙ୍କଠାରୁ ସବୁ ମାୟାବିଦ୍ୟା ଶିଖିଲେ । ଦିନେ ସେ ହତିଆର ଧରି ଶମ୍ବରାସୁର ପାଖରେ ଯାଇ ଠିଆହେଲେ । ତାକୁ ଗାଳି ଦେଇ ଲଢ଼ାଇକୁ ଡାକିଲେ । ପିଲାଟିର ଏପରି ଗର୍ବ ଦେଖି ଅସୁର ରାଗରେ ନିଆଁପରି ଜଳି ଉଠିଲା । ସେଇକ୍ଷଣି ଗଦା ଧରି ପ୍ରଦ୍ୟୁମ୍ନ ଉପରକୁ ଧାଇଁଲା । ଦୁହିଁଙ୍କ ଭିତରେ ଭାରି ଯୁଦ୍ଧ ହେଲା । ଶେଷରେ ଅସୁର ଅନ୍ତର୍ଦ୍ଧାନ ହୋଇ ଯାଇ ପ୍ରଦ୍ୟୁମ୍ନଙ୍କ ଉପରେ ବାଣ ବରଷାଇ ଦେଲା । ପ୍ରଦ୍ୟୁମ୍ନଙ୍କୁ ତ ମାୟାବିଦ୍ୟା

ବେଁଶ୍ ପଇଟେ—ସେ ଛଡ଼ନ୍ତେ କେତେକେ ? ମାୟାଯୁଦ୍ଧ ଉଭୟଙ୍କ ମଧରେ ଚାଲିଲା । ଶେଷରେ ପ୍ରଦ୍ୟୁମ୍ନ ହାତରେ ଶମ୍ବରସୁରର ମୁଣ୍ଡଟି ଧଡ଼ ଅସି ସମସ୍ତଙ୍କ ମଧରେ ଛିଡ଼ା ହୋଇପଡ଼ିଲେ । ମୁଣ୍ଡରୁ ରକ୍ତ ଝରଝର ବହୁଛି । ହାତଯାକ ରକ୍ତ, ଦେହଟାଯାକ ରକ୍ତ, ସମସ୍ତେ ଦେଖି କାବା !

ଶମ୍ବରସୁର ମରବା କଥା ଶୁଣି ମାୟାଦେବୀଙ୍କର ଭେର ଆନନ୍ଦ । ଦୁହେଁ ମାୟାବଳରେ ଉଡ଼ି ଉଡ଼ି ଦ୍ୱାରକା ମହଲ୍ ଭିତରେ ଯାଇ ପଶିଲେ ।

ରୁକ୍ମଣୀ ସେ ଦୁହିଁଙ୍କି ଦେଖିଲାକ୍ଷଣି ତାଙ୍କ ପୁଅକଥା ମନେ ପଡ଼ିଗଲା । ସେ ମନେମନେ କହି ପକାଇଲେ, 'ଆହା ମୋ ପୁଅଟି ଯଦି ଆଜଯାଏ ଥାନ୍ତା, ସେ ଯୁଆଙ୍କପର ଦିଶୁଥାନ୍ତା ଯେ । ଯୁଆଙ୍କର ତ ରୂପ ବରବର ମୋ ସ୍ୱାମୀଙ୍କର ରୂପପର ! ଛାତି, ହାତଗୋଡ଼, ମୁହଁରୁ ଠିକ୍ ସେହିପର ଦିଶୁଛି ।' ଘଡ଼ିଏ ଚାହିଁ ରହିଲେ, ତା'ପରେ ବିଚାରିଲେ, 'ଏହାଙ୍କୁ ଦେଖିକରି ତ ମୋ ମନ ଛନଛନ ବିକଳ ହେଉଛି; ଏ କ'ଣ ସତେ ମୋର ପୁଅ !'

ଠିକ୍ ଏତିକବେଳେ କୃଷ୍ଣ ସେଠାରେ ଆସି ପହଞ୍ଚିଲେ । ପ୍ରଦ୍ୟୁମ୍ନ ଆଉ ମାୟାଦେବୀଙ୍କୁ ଚାହିଁ ଥକ ଯାଇ କାବାହୋଇ ଠିଆ ହେଲେ । ସେତେବେଳେ ନାରଦ ଆସି ସେମାନଙ୍କୁ ସବୁ କଥା କହିଦେଲେ । ରୁକ୍ମଣୀ ପୁଅକୁ ଫେରି ପାଇ କୁଣ୍ଢେଇ ପକେଇଲେ । ଗଲାକଥା ମନେ ପକାଇ କେତେ କାନ୍ଦିଲେ । ପରେ ଦ୍ୱାରକାରେ ବଡ଼ ଉତ୍ସବ ହେଲା । ପୁଅ ବୋହୂଙ୍କୁ ଘେନ ରୁକ୍ମଣୀ ସୁଖରେ ରହିଲେ ।

ଦଇବ ଭିଆଣ, କେ କରିବ ଆନ ।

---

# କାଳୀ-ଦଳନ

ଦିନେ ଶ୍ରୀକୃଷ୍ଣ ଗୋପାଳମାନଙ୍କ ସାଙ୍ଗରେ ଧରି ଯମୁନାତଟକୁ ଗଲେ । ଯମୁନାର ପାଣି ବଡ଼ ଗଭୀର, ଧୀର, ନୀଳ—ତା'ର ଗୋଟିଏ ଥାନରେ ଗଣ୍ଡେଟିଏ ଥିଲା । ସେଇ ଗଣ୍ଡର ପାଣି ବଡ଼ ଚଞ୍ଚଳ । ସେଥିରେ ଭଉଁରୀ ବୁଲୁଥିଲା; ପାଣି ଟକର ମକର ହୋଇ ଫୁଟୁଥିଲା, ପାଖରେ ଗଛପତ୍ର କିଛି ନ ଥିଲା । ଅନେକ ପଶୁ ପକ୍ଷୀ ପୋକ ଯୋକ ଏଇ ପାଖରେ ମରି କୁଢ଼କୁଢ଼ ପଡ଼ିଥିଲେ ।

କୃଷ୍ଣ ଦେଖିଲେ, ଯମୁନାର ଏଇ ଗଣ୍ଡରେ କାଳୀ ବୋଲି ଗୋଟିଏ ସାପ ଅଛି । ସେ ସମସ୍ତଙ୍କୁ ଖାଇ ଦେଉଛି । ପାଣିରେ ବିଷ ଛାଡ଼ୁଛି । ଯେ ସେ ବିଷମିଶା ପାଣି ପିଏ, ସେ ସେଇକ୍ଷଣି ମରିଯାଏ ।

କୃଷ୍ଣ ଗୋପାଳମାନଙ୍କୁ ତାଳି ମାରିବାକୁ କହିଲେ । ସେ ସେଇକ୍ଷଣି ଗଣ୍ଡ ଭିତରକୁ ଡେଇଁ ପଡ଼ିଲେ । ପାଣିରେ ପହଁରି ପହଁରି ତାଳି ମାରିଲେ । କାଳୀ ଏହା ଜାଣି କ୍ରୋଧରେ ଫଣା ଟେକି ପାଣି ଉପରକୁ ଆସିଲା । କୃଷ୍ଣ ତା' ଫଣାକୁ ଅଣ୍ଟା ମାଡ଼ ମାରିଲେ । ତା'କୁ ଚିପି ଧରି ଫଣା ଉପରକୁ ଉଠିଲେ । ଗୋଡ଼ରେ ତା ମୁଣ୍ଡଟାକୁ ଦଳିଲେ । ଜୋରରେ ଗୋଇଠା ମାରିଲେ । ସାପର ମୁଣ୍ଡରୁ ଝରଝର ରକ୍ତ ବହିଲା । ସେ ଭୟରେ ରଡ଼ି ଛାଡ଼ିଲା ।

ନାଗ-କନ୍ୟାମାନେ ତା'ର ରଡ଼ି ଶୁଣି ପାଣିରୁ ବାହାରିଲେ । କୃଷ୍ଣଙ୍କୁ ଈଶ୍ୱର ବୋଲି ଜାଣିପାରି ସ୍ତୁତି କଲେ । ଏ ସ୍ତୁତିରେ ଶ୍ରୀକୃଷ୍ଣ



ସନ୍ତୁଷ୍ଟ ହୋଇ କାଳୀକୁ ଛାଡ଼ିଦେଲେ । କାଳୀ ମଧ ଅନେକ ପ୍ରକାର ସ୍ତୁତି କଲା । ପ୍ରଭୁ ସେମାନଙ୍କୁ ବୋଇଲେ, 'ତମେମାନେ ସଂକ୍ଷୁ

ଏଇଠୁଁ ପଳାଅ, ସମୁଦ୍ରରେ ଯାଇ ରହ ।' ସେମାନେ ସବୁ ଯମୁନା ଛାଡ଼ି ବାହାରିଗଲେ । ଶ୍ରୀକୃଷ୍ଣ ଗୋପାଳମାନଙ୍କ ସାଥିରେ ଫେରିଲେ ବାହୁଡ଼ିଗଲେ ।

'ତୁ ନାଥ ପରମ ଦୟାଳୁ, ଦୁଷ୍ଟ ଦଣ୍ଡ ନବାର ସନ୍ଥ ପାଳୁ ।'

---

## ହାତୀ ପାଦତଳେ ପ୍ରହ୍ଲାଦ

ପ୍ରହ୍ଲାଦ ଗୋଟିଏ ଛୋଟ ପିଲା । ସେ ଜଣେ ଅସୁର ରାଜାର ପୁଅ । ସେ ସବୁବେଳେ ହରିନାମ ଧରୁଥାନ୍ତି । ହରି ତ ରାକ୍ଷସମାନଙ୍କ ଶତ୍ରୁ ! ପ୍ରହ୍ଲାଦଙ୍କର ବାପା କଟିତ ବା ଶୁଣି ରହନ୍ତେ ! ସେ ହରିନାମ ଛାଡ଼ିବା ପାଇଁ ପ୍ରହ୍ଲାଦଙ୍କୁ ଅନେକ ଥର କହିଲେ, ଭୟ ଦେଖାଇଲେ ନାନା ପ୍ରକାର ଅଣ୍ଡ ଦଣ୍ଡ ଦେଲେ । ତେବେ ମଧ୍ୟ ପ୍ରହ୍ଲାଦ ସର୍ବମୟ ହରିଙ୍କୁ ଡାକିଲେ । ଆନନ୍ଦରେ କୀର୍ତ୍ତନ କରି ନାଚି ନାଚି ବୁଲିଲେ । ସମସ୍ତଙ୍କୁ ହରିନାମ ଗାଇବାକୁ କହିଲେ ।

ଏହା ଦେଖି ଅସୁର ରାଜା କ୍ରୋଧରେ ଜରଜର ହୋଇଗଲେ । ସେ ସେଇକ୍ଷଣି ପ୍ରହ୍ଲାଦଙ୍କୁ ଡକାଇ, ଦାନ୍ତ କଡ଼ମଡ଼ କରି, ଆଖି ତରାଟି କହିଲେ, 'ରେ ପାପିଷ୍ଠ—ଅଧମ, ହରିନାମ ଛାଡ଼, ଶିବଙ୍କୁ ଡାକ, ନୋହିଲେ ତୋର ପ୍ରାଣ ରହିବ ନାହିଁ ।' ମାତ୍ର ପ୍ରହ୍ଲାଦ ହାତଯୋଡ଼ି କହିଲେ, 'ବାପା ! ମିଛଟାରେ କାହିଁକି ତୁମେ ତ୍ରିଭୁବନବଧାତା ଶ୍ରୀହରିଙ୍କର ନିନ୍ଦା କରୁଛ ! ସେ ହରି—ସେ ଶିବ—ସେ ବ୍ରହ୍ମା—ସେ ସବୁ ; ତାଙ୍କଠୁଁ ସବୁ ଜାତ । ମୋର ଏ ସାମାନ୍ୟ ଜୀବନ ଲାଗି ହରିଙ୍କୁ ଛାଡ଼ି ପାରିବ ନାହିଁ ।

ହାତୀ ପାଦତଳେ ପ୍ରହ୍ଲାଦ



ବାଳକର ଏପରି ନିର୍ଭୟ କଥା ଶୁଣି ରଜା ରାଗରେ ନିଆଁ ପରି ଜଳିଯାଇ ପାଖରେ ଥିବା ଅସୁରମାନଙ୍କୁ କହିଲେ, "ଏହିକ୍ଷଣି ଏ ଚଣ୍ଡାଳକୁ ମୋ ଆଖି ଆଗରୁ ନେଇଯାଅ, ଦନ୍ତାହାତୀର ପାଦତଳେ ତାକୁ ରଖି ଚକଟାଇ ଦିଅ, ଯେପରି ସେ ଚେପାଚେପି ହୋଇ ତାର ହାଡ଼, ମାଂସ, ରକ୍ତ ସବୁ ଧୂଳିରେ ମିଶିଯିବ ।"

ଅସୁରମାନେ ପ୍ରହ୍ଲାଦଙ୍କୁ ସେଇକ୍ଷଣି ହାତୀଶାଳକୁ ନେଇଗଲେ । ଏ ଖବର ଯାଇ ଗାଁରେ ପଶିଲା । ଗାଁର ଅସୁରମାନେ କୌତୁକ ଦେଖିବାପାଇଁ ସେଠାରେ ଯାଇ ରୁଣ୍ଡ ହେଲେ । କେହି କେହି ଦୁଃଖ କଲେ, କେହି କେହି କହିଲେ, 'ଦେଖିବା ତୋର ହରି ତୋତେ ଏଥର କିପରି ରକ୍ଷା କରିବ ।' ରଜାଙ୍କ ଚାକରମାନେ ପ୍ରହ୍ଲାଦଙ୍କର ହାତ ଗୋଡ଼ ବାନ୍ଧିଦେଇ ତାଙ୍କୁ ଦନ୍ତାବଳ ହାତୀର ଗୋଡ଼ତଳେ ପକାଇଦେଲେ । ପ୍ରହ୍ଲାଦ ନିର୍ଭୟରେ ହରିଙ୍କୁ ଡାକିଲେ, 'ହେ ସର୍ବମୟ ହରି, ହେ ଭକ୍ତବତ୍ସଳ ପ୍ରଭୁ— ତୁମେ ସର୍ବପ୍ରାଣିର ଆତ୍ମାରେ ଅଛ, ତୁମେ ତୁମର ନାମ ରଖ । ମୋ ପ୍ରାଣ ଯାଉ ପଛେ, ତୁମ ନାମରେ କଳଙ୍କ ନ ଲାଗୁ ।'

କି ଆଶ୍ଚର୍ଯ୍ୟ ! ଅସୁରମାନଙ୍କ ହାତରେ କିଛି ହୋଇପାରିଲା ନାହିଁ । ହାତୀ ଗୋଡ଼ ଟେକି ରହିଲା—ପ୍ରହ୍ଲାଦଙ୍କୁ କିଛି କଲା ନାହିଁ । ମାହୁନ୍ତ ଥରେ ହାତୀକୁ ଅଙ୍କୁଶରେ ମାଡ଼ ଦେଲା । ହାତୀ ଠେଲିଲା ନାହିଁ କି ଚଳିଲା ନାହିଁ— ସିମିତି ପାଦ ଟେକି ରହିଲା । ଶେଷରେ ବଡ଼ ଆନନ୍ଦରେ ପ୍ରହ୍ଲାଦଙ୍କୁ [illegible] ଟେକି ନେଇ ନିଜ ପିଠିରେ ବସାଇଲା । ଏହା ଦେଖି ଅସୁରମାନେ ଭୟ କଲେ, ଆଶ୍ଚର୍ଯ୍ୟ ହୋଇ ପଚାରିଲେ, 'ପ୍ରହ୍ଲାଦ, ତୁ କି କୁହୁକ ବିଦ୍ୟା ଶିଖିଛୁ ?'

ପ୍ରହ୍ଲାଦ କହିଲେ,—

'ଏକାନ୍ତ ଯାହାର ଅଛି ନାରାୟଣେ ମତି,
ଅନିଷ୍ଟ ସାଧନେ ତାର କାହାର ଶକତି ?'

---

## ବଳୀରାଜା

ପୂର୍ବକାଳରେ ବଳୀ ବୋଲି ଜଣେ ବଡ଼ରାଜା ଥିଲେ । ସେ ବଡ଼ ଦୟାଳୁ । ସେ ଏଡ଼େ ଦାନୀ ଯେ ତାଙ୍କର ଯଶ ଚାରିଆଡ଼େ ପୂରିଗଲା । ତାଙ୍କର ଦାତାପଣ ଦେଖି ଦେବତାମାନେ ଭୟରେ କମ୍ପିଲେ । ଭଗବାନ୍ ମଧ୍ୟ ସ୍ଥିର ହୋଇ ରହି ପାରିଲେ ନାହିଁ । ରାଜାଙ୍କର ଦାତାପଣ ବାଢ଼ିବା ପାଇଁ ଦିନେ ଭଗବାନ୍ ବ୍ରାହ୍ମଣ ରୂପରେ ରାଜାଙ୍କ ପାଖକୁ ଗଲେ ।

ବ୍ରାହ୍ମଣଟି ତିନଚାଖଣ୍ଡ ଉଚ୍ଚ । ହାତରେ ଦଣ୍ଡ କମଣ୍ଡଳୁ ଧରିଛନ୍ତି । ତାଳପତ୍ର ଛତାଟିଏ ମୁଣ୍ଡାଇଛନ୍ତି । ଦେହ ମୁଣ୍ଡଯାକ ବିଭୂତି ବୋଳା । ବଡ଼ ସୁନ୍ଦର ଦିଶୁଛନ୍ତି । ସେ ବେଦ ପଢ଼ି ପଢ଼ି ଚାରିଦିଗ କମ୍ପାଇଦେଲେ । ଏହା ଶୁଣି ବଳୀରାଜା ଆସି ତାଙ୍କୁ ଭେଟିଲେ । ସେ ବ୍ରାହ୍ମଣଙ୍କର ସୁନ୍ଦର ବାମନ ରୂପ ଦେଖି କାଙ୍ଗା ହୋଇଗଲେ । ତାଙ୍କୁ ନମସ୍କାର କରି ତାଙ୍କ ନା ଗାଁ ପଚାରିଲେ, କାହିଁକି ଆସିଛନ୍ତି ପଚାରି ବୁଝିଲେ ।

ବାମନ କହିଲେ, 'ମହାରାଜ ! ମୋର ନା' ଦାମୋଦର ଓଝା, ମୋ ଘର ଚକ୍ରନଗର, ମୁଁ ଜଣେ ବଡ଼ ଗରିବ ବ୍ରାହ୍ମଣ । ଶୁଣିଲି ଆପଣ ସବୁବେଳେ ସତ କହୁଛନ୍ତି, ଧର୍ମ ବାଟରେ ଯାଉଛନ୍ତି, ଯାହାକୁ ହେଲେ ଦୟା ଦେଖାଉଛନ୍ତି । ଆପଣଙ୍କ ପରି ଦାତା ଏ ଭୂମଣ୍ଡଳରେ କଏ ନାହିଁ । ଏ ହେତୁରୁ ଭିକ୍ଷା କରିବାପାଇଁ ଆସିଛି ।

ବଳୀରଜା ବ୍ରାହ୍ମଣଙ୍କର ପାଦପୂଜା କରି କହିଲେ, "ହେ ବ୍ରାହ୍ମଣ-ଗୋସାଇଁ, ତୁମର କି ଇଚ୍ଛା ଅଛି ବୋଲ; ହାତୀ, ଘୋଡ଼ା, ସୁନା, ରୂପା, ହୀରା, ମୋତି, ମାଣିକ୍ୟ ଯାହା ମାଗିବ ନିଶ୍ଚୟ ଦେବି" । ବାମନ କହିଲେ, "ହେ ରଜା ମୁଁ ତ ଲୋଭୀ ବ୍ରାହ୍ମଣ ନୁହେ ମୋତେ କେବଳ ତିନିପାଦ ଭୂମି ଲୋଡ଼ା, ଆଉ ଅଧିକ କିଛି ମାଗୁନାହିଁ ।" ଏହା ଶୁଣି ରଜା କହିଲେ,--

"ତୁମର ବୁଦ୍ଧି ଅଟେ ସାନ, ତେଣୁ ମାଗିଲ ଅଳ୍ପଦାନ,
ତୁମ କର୍ମରେ ଅଛି ଯାହା, ଅନ୍ୟଥା କେ କରିବ ତାହା ।"

ଏହା କହି ଶଙ୍ଖରେ ପାଣି ଟେକି ଦେବାପାଇଁ ବାହାରିଲେ, ସେତେବେଳେ ଶୁକ୍ରମୁନି ପାଖରେ ଠିଆ ହୋଇଥିଲେ । ସେ ରଜାଙ୍କୁ କାନରେ ଧୀରେ କହିଦେଲେ, 'ହେ ରଜା, ଏ ସାକ୍ଷାତ୍ ହରି, ବାମନ ବେଶରେ ଆସିଛନ୍ତି, ତୁମର ସମ୍ପତ୍ତି ସବୁ ନେଇ ଯିବେଟି, ଏହାଙ୍କୁ କିଛି ଦାନ କରନାହିଁ ।' ଏହିପରି କେତେପ୍ରକାର ବୁଝାଇ କହିଲେ ମଧ୍ୟ ରଜା ମାନିଲେ ନାହିଁ । ସେ କହିଲେ,'ମୁଁ କେବେ ସତ୍ୟ ଲଙ୍ଘିବି ନାହିଁ । ସତ୍ୟ କରିଛି, ନିଶ୍ଚୟ ପାଳିବି । ସାକ୍ଷାତ୍ ଭଗବାନ୍ ଯଦି ମୋ ଦ୍ୱାରକୁ ଦାନ ନେବାପାଇଁ ଆସିଛନ୍ତି, ସେଥିଠୁଁ ବଳି ମୋର ଭାଗ୍ୟ କ'ଣ ?' ଏହିପରି କହି ରଜା ଶଙ୍ଖରେ ପାଣି ଧରି ଆଉ ଥରେ କହିଲେ, 'ହେ ବ୍ରାହ୍ମଣ, ମୁଁ ତିନିପାଦ ଭୂମି ଦେଲି ନିଅ ।'ମାତ୍ର ଏ କ'ଣ ! ଶଙ୍ଖରୁ ପାଣି ପଡ଼ିଲା ନାହିଁ । ଶୁକ୍ରମୁନି ମାୟା ରୂପରେ ଯାଇ ଶଙ୍ଖ ମୁହଁରେ ଅଟକିଗଲେ । ତେଣୁ ପାଣି ପଡ଼ିଲା ନାହିଁ । ଶ୍ରୀହରି ଏହା ଜାଣି କୁଶଟିଏ ଶଙ୍ଖ ମୁହଁରେ ଗେଞ୍ଜିଦେଲେ । କୁଶ ମାଡ଼ରେ ଶୁକ୍ରଙ୍କର ଆଖିଟିଏ ଫୁଟିଗଲା । ସେ କଲବଲ ହୋଇ ପଦାକୁ ବାହାରି ପଡ଼ିଲେ । ଏବେ ପାଣି ଗଡ଼ି

ବାମନଙ୍କ ହାତରେ ପଡ଼ିଲା । ତା ଉତ୍ତାରୁ ବ୍ରାହ୍ମଣ ଭୂଇଁରେ ଗୋଟିଏ ପାଦ ପକାଇଲେ । ପାଦଟି ପୃଥିବୀଯାକ ମାଡ଼ିବସିଲା । ଆଉ ଗୋଟିଏ ପାଦ ଆକାଶ ଘୋଡ଼ାଇ ପକାଇଲା । ଅନ୍ୟ ପାଦପାଇଁ ଜାଗା ଖୋଜିଲେ । ରାଜା ପଚାରିଲେ, 'ତୁମର ଆଉ ଗୋଟିଏ ପାଦ କାହିଁ ?' ଏହା ଶୁଣି ଶ୍ରୀହରି ତାଙ୍କ ନାଭିରୁ ଆଉ ଗୋଟିଏ ପାଦ କାଢ଼ିଦେଲେ । ସେ ପାଦ ପାଇଁ ରାଜା ତାଙ୍କର ଦେହଟି ଯାଚିଲେ । ଭଗବାନ୍ ସନ୍ତୁଷ୍ଟ ହୋଇ ସେ ପାଦରେ ବଳୀଙ୍କୁ ଚାପିଦେଇ ପାତାଳ ପୁରରେ ରାଜା କରି ରଖିଲେ । ସେ ରାଜା ଆଉ କେବେ ମଲେ ନାହିଁ । ସବୁବେଳେ ସୁଖରେ ରହିଲେ ।

---

## ଗଜଉଦ୍ଧାରଣ

ଥରେ ସମୁଦ୍ର ବଡ଼ ଖର ହୋଇଥିଲା । ଜୁଆରରେ ସମୁଦ୍ର ଭିତରୁ ଅନେକ ଜନ୍ତୁ ଉଠିଲେଇହୋଇ ପଦାରେ ପଡ଼ୁଥାନ୍ତି । ସେମାନଙ୍କ ଭିତରେ ଗୋଟିଏ ବଡ଼ କୁମ୍ଭୀର ଥିଲା । ବହୁତ ଜନ୍ତୁ ବାଲି ଉପରେ ମରି ପଡ଼ିଲେ । କେତେକ ଜୁଆର ବନ୍ଦ ହେବାକ୍ଷଣି ସମୁଦ୍ର ଭିତରେ ପଶିଗଲେ । ମାତ୍ର କୁମ୍ଭୀର ବାଲିରେ ଯାଇ ପାରିଲା ନାହିଁ । ସେ ସେଇଠି କେତେ ଦିନ ପଡ଼ିରହିଲା ।

ଦିନେ ସେ ବଡ଼ ହାତୀଟାଏ ଦେଖିଲା । କୁମ୍ଭୀର ହାତୀକୁ ଦୂରରୁ ଜୁହାର କରି କହିଲା, "ହଇ ହେ ସାଙ୍ଗ, ତୁମେ ବଡ଼ ଦୟାଳୁ, ବଡ଼ ବଳୁଆ । ତୁମ ପରି ଉପକାରୀ ଏ ଜଗତରେ ମୁଁ ଆଉ କାହାକୁ ଦେଖୁନାହିଁ । ଦେଖ ମୋର ବିପଦ । ଏ ବାଲିରୁ ମୁଁ ଉଠି ପାରୁ ନାହିଁ । ଦୟାକରି ମୋତେ ଟେକି ନେଇ ପାଣି ଭିତରେ ପକାଇଦିଅ ।"

କୁମ୍ଭୀରର ଅବସ୍ଥା ଦେଖି, ସକଳ କଥା ଶୁଣି ହାତୀର ମନରେ ଦୟା ବସିଲା । ସେ ତାହାର ଦାନ୍ତ ଆଉ ଶୁଣ୍ଢ ଲଗାଇ ବଡ଼ କଷ୍ଟରେ



କୁମ୍ଭୀରକୁ ଠେଲିଦେଲା । ତାହାକୁ ଅଣିଏ ପାଣିରେ ପକାଇବାକୁ ବାହାରିବାରୁ କୁମ୍ଭୀର ଆଉ ଥରେ ପ୍ରାର୍ଥନା କଲା, "ହେ ବିପଦବନ୍ଧୁ— ମୁଁ ଅଳ୍ପ ପାଣିରେ ଯାଇପାରିବ ନାହିଁ, ମୋତେ ଗଭୀର ପାଣିରେ ନେଇ ଛାଡ଼ିଅସ ।" ହାତୀଟି ବଡ଼ ଦୟାଳୁ, ସେ ତା କଥାରେ ପଡ଼ି ତାହାକୁ ବହୁତ ପାଣିକୁ ନେଇଗଲା । ହାତୀ ଯେତେବେଳେ ବୁଡ଼େ କି ବୁଡ଼େ ହେଲା, ସେତେବେଳେ କୁମ୍ଭୀର ହାତିର ଥୋଡ଼ପା ଆଉ ଦାନ୍ତ ମଝିରୁ ଝଟ୍‌କିନା ଖସି ପଡ଼ିଲା । ତା ଉପରୁ ହାତିର ଗୋଟିଏ ଗୋଡ଼ ଜୋରରେ ଭିଡ଼ିଧରି ଅଗାଧ ଗଭୀର ଜଳକୁ ଓଟାରି ନେଲା । ସେ ମନେ ମନେ ପାଞ୍ଚିଲା, 'ମୁଁ ବଡ଼ ଭାଗ୍ୟବାନ୍—ଏହାର ମାଂସରେ ମୋର ବନ୍ଧୁବାନ୍ଧବ ପରିବାର ସମସ୍ତେ ସୁଖରେ ଚାରିମାସ ବଞ୍ଚିବେ ।'

•

କୁମ୍ଭୀରର ଏହି ଦ୍ରୋହ ଅବିଶ୍ୱାସ କାର୍ଯ୍ୟ ଦେଖି ହାତିର ବଡ଼ ଭୟ ହେଲା । ସେ କାତର ହୋଇ ଭଗବାନଙ୍କୁ ଡାକିଲା, 'ହେ ବିପଦ-ନାଶନ ଶରଣରକ୍ଷଣ ହରି—ମୋର ଶରଣ ରଖ, କୁମ୍ଭୀର ମୋତେ ବିଶ୍ୱାସରେ ଅଣି ମୋ ପ୍ରାଣ ନେଉଛି । ତୁମେ ନ ରଖିଲେ ନଷ୍ଟେ ନାଶଗଲି ।'

"ଗୋବିନ୍ଦ ଗୋବିନ୍ଦ ଗୋସାଇଁ, ତୋ ବିନୁ ଅନ୍ୟ ଆଶା ନାହିଁ ।"

ଏହି ବିକଳ ରଡ଼ି ଭଗବାନଙ୍କୁ ଏକାଥରକେ ଅଥୟ କରି ପକାଇଲା । ପ୍ରଭୁ ସେଇକ୍ଷଣି ଭକ୍ତର ଉଦ୍ଧାରପାଇଁ ତାଙ୍କ ହାତରେ ଥିବା ଚକ୍ରଟି ଛାଡ଼ିଦେଲେ । ତାହା ଯାଇ କୁମ୍ଭୀରକୁ ଖଣ୍ଡ ଖଣ୍ଡ କରି

ଯକାଇଲା । ହାତୀ ଇମିତ ବିପଦରୁ ରକ୍ଷା ପାଇଲା । ସେ ଆନନ୍ଦରେ ଶ୍ରୀହରିଙ୍କ ନାମ ସ୍ମରଣ କରି ସେଇଠୁଁ ବାହାରିଗଲା ।

'ଯେ ଲୋକ ଚନ୍ତେ ପରମନ୍ଦ, ତା ମନ୍ଦ ଚନ୍ତନ୍ତି ଗୋବିନ୍ଦ ।'

---

## ରାବଣ ପ୍ରତି ମାରିଚର ଉପଦେଶ

ବନବାସ ବେଳେ ଥରେ ରାମ ଲକ୍ଷ୍ମଣ ପଞ୍ଚବଟୀ ବଣରେ ସୀତାଙ୍କ ସଙ୍ଗରେ ରହିଥିଲେ । ସେହି ବଣରେ ଥିବା ଅସୁରଙ୍କୁ ଗୋଟା ଗୋଟା କରି ମାରି ପକାଇଲେ । ଜଣେ ଅସୁର ଏ ଖବର ଲଙ୍କାର ରାଜା ରାବଣଙ୍କୁ ଜଣାଇଲା । ରାବଣ ଏହା ଶୁଣି ମାରିଚ ବୋଲି ଗୋଟିଏ ଅସୁରକୁ ଡକାଇଲା । ସେ ଆସିଲାରୁ ତାହାକୁ ରାମ ଲକ୍ଷ୍ମଣଙ୍କର ସବୁ କଥା କହିଲା । ଆଉ କହିଲା, "ତୁମେ ମୋତେ ଟିକଏ ସାହାଯ୍ୟ କଲେ ମୁଁ ରାମର ଭାର୍ଯ୍ୟାକୁ କପଟରେ ଘେନ ଆସିବି ।" ମାରିଚ ବୋଇଲା, 'ମହାରାଜ ଆପଣ ରାମ ଲକ୍ଷ୍ମଣଙ୍କୁ ଜାଣନ୍ତି ନାହିଁ । ତାଙ୍କ ପରି ବଳୁଆ ଏ ମହୀମଣ୍ଡଳରେ ଆଉ କିଏ ନାହିଁ । ତାଙ୍କର ଧନୁଶର କ୍ଷଣକେ ସଂସାର ଛାରଖାର କରିଦେବ । ଏ ଦୁହେଁ ବିଶ୍ୱାମିତ୍ରଙ୍କ ଯାଗ ଜଗିବାକୁ ଯାଇଥିଲେ । ସେତେବେଳକୁ ଏ ଦୁହେଁ ନିହାତ ଛୋଟ ପିଲା । ମୁଁ ଏମାନଙ୍କୁ ଖାତର ନ କରି ଯାଗ ଭାଙ୍ଗିବାକୁ ଗଲି । ମାତ୍ର ରାମ ଇମିତ ଗୋଟାଏ ବାଣ ମାରିଲେ ଯେ, ମୁଁ ଫିଙ୍ଗି ହୋଇ ସମୁଦ୍ରରେ ଯାଇ ପଡ଼ିଲି । ସେତେବେଳେ ତାଙ୍କର ବଳକଳ ସବୁ ବୁଝିଲି । ଏବେ ଏମାନେ ଯୁବା । ଏମାନଙ୍କ ସାଥିରେ କଳି କଲେ ସାପଗାତରେ ହାତଦେଲା ପରି ହେବଟି !'



ଏ କଥା ଶୁଣି ରାବଣ କ୍ରୋଧରେ ଜରଜର ହେଲା, ଗର୍ଜ୍ଜନ କଲା । ଆଖି ତରାଟି ଦାନ୍ତ କଡ଼ମଡ଼ କରି ବୋଇଲା, 'ମାରିଚ ! ମୋ କଥା ଯଦି

ନ ମାନିବୁ ଜାଣିଥା, ଏଇକ୍ଷଣି ତୋତେ ଏଇ ଖଣ୍ଡାରେ ଦୁଇଖଣ୍ଡ କରି-ଦେବି ।' ମାରୀଚ ଦେଖିଲା, ଆଉ ଗତି ନାହିଁ । ଭାବିଲା ମରିବା ତ ଅବଶ୍ୟ; ରାବଣ ହାତରେ ମରିବା ଠାରୁ ରାମଙ୍କ ହାତରେ ମଲେ ମୁଁ ସ୍ୱର୍ଗକୁ ଯିବି ।' ଏହା ଭାବିକରି ସେ ରାବଣ କଥାରେ ହଁ କଲା ।

ସେ ରାବଣ ଆଜ୍ଞାରେ ସୁନ୍ଦର ହରିଣ ରୂପଟିଏ ଧରି ପଞ୍ଚବଟୀ ବଣକୁ ଗଲା । ତା ଦେହଟିଯାକ ସୁନା ପରି ଝଟକିଲା । ତାକୁ ଦେଖି ସୀତାଙ୍କର ବଡ଼ ଲୋଭ ହେଲା । ତାକୁ ମାରି ଆଣିବାକୁ ସେ ରାମଙ୍କୁ କହିଲେ । ରାମ ହରିଣ ପଛେ ପଛେ ଗୋଡ଼ାଇ ଯାଇ ତାକୁ ମାରି ଦେଲେ ।

---

## ଦରିଦ୍ର ସୁଦାମା

ସୁଦାମା ଜଣେ ବଡ଼ ପ୍ରଭୁଭକ୍ତ । ସେ ବଡ଼ ଦରିଦ୍ର; ପେଟକୁ ଭୋଜନ, ଦେହକୁ ବସ୍ତ୍ର ମିଳୁ ନ ଥିଲା । ସେ ଛିଣ୍ଡା ବସ୍ତ୍ର ଗୁଡ଼ାଏ ଗଣ୍ଠେଇ ପିନ୍ଧୁଥିଲେ । ସେ ବିଭା ହୋଇଥିଲେ । ମାତ୍ର ସଂସାରରେ ତାଙ୍କର କିଛି ଲୋଭ ନ ଥିଲା, ଧନ ଅର୍ଜିବା ଖାଇ ପିଇ ସୁଖରେ ରହିବା, ଭୋଗ କରିବା କଥା ତାଙ୍କ ମନରେ କେବେ ପଶୁ ନ ଥିଲା । ସେ ସବୁବେଳେ ଭଗବାନଙ୍କୁ ଧ୍ୟାନ କରୁଥିଲେ । ମନ ଜାଣି ଭଗବାନ୍ ତାଙ୍କୁ ଭଲ ଭାର୍ଯ୍ୟାଟିଏ ଖଞ୍ଜି ଦେଇଥିଲେ । ସେ ବଡ଼ କଷ୍ଟରେ ଚଳିଲେ ମଧ୍ୟ ଗୃହସ୍ଥଙ୍କୁ ବାଧିବା ଭଳି ମୁହଁ ଛିଞ୍ଚାଡ଼ି କେବେ କଥା କହୁ ନ ଥିଲେ ।

ଖାଇବା ପିଇବା କଷ୍ଟ ସମ୍ଭାଳି ନ ପାରି ଦିନେ ସେ ପତି ପାଖକୁ ଯାଇ କହିଲେ, ' "ହଇ ହେ, ଭଗବାନ୍ ଶ୍ରୀକୃଷ୍ଣ ପରା ତୁମର ପିଲାଦିନର

ସାଥି ! ସେ ତ ବଡ଼ ଦୟାଳୁ, ଯେ ଯାହା ମାଗେ, ସେ ତାକୁ ଦିଅନ୍ତି ।
ତୁମେ ଥରେ ତାଙ୍କ ପାଖକୁ ଯାଆନ୍ତ । ସେ ଠିକ୍ ବୁଝିବେ ଆମର ଏ
କଷ୍ଟ ଘୁଞ୍ଚିଲା; ଧନ ମାଗିବ ଆସିଲା; ଆମର ସାତପୁରୁଷଯାକ ବଡ଼ ସୁଖ
ପାଆନ୍ତେ । ତୁମର ଦରପୁରୁଣିଆ, ଛିଣ୍ଡା ଲେଙ୍ଗୁଟା ପିନ୍ଧା ଦେଖିଲେ ମୋର
ହୃଦୟ ଫାଟି ଯାଉଛି, ଭଗବାନ୍ ଶ୍ରୀକୃଷ୍ଣ ତମର ଏ ଅବସ୍ଥା ଦେଖିଲେ
ନିଶ୍ଚୟ ତାଙ୍କର ଦୟା ହେବ । ତୁମେ ଥରେ ତାଙ୍କ ପାଖକୁ ଯାଆନ୍ତ ।"

ସୁଦାମା ତୁନି ହୋଇ ରହିଲେ । ମାତ୍ର ଭାର୍ଯ୍ୟା ଥରକୁ ଥର ସେହି
କଥା କହିବାରୁ ସେ ଶେଷରେ ହଁ କଲେ । କହିଲେ, "ଦେଖ ଖାଲି
ହାତରେ ଦେବତା ଓ ରଜାଙ୍କ ପାଖକୁ ଯାଆନ୍ତି ନାହିଁ—ଘରେ କ'ଣ
ଅଛି ଦିଅ—ତା' ନେଇ କୃଷ୍ଣଙ୍କ ପାଖକୁ ଯିବି ।" ଏହା ଶୁଣି ବ୍ରାହ୍ମଣୀ
ଆନନ୍ଦରେ ଧାଇଁ ଯାଇ ଘରର ଏ କୋଣ ସେ କୋଣ ସବୁ ଦରାଣ୍ଡିଲେ ।
କଣିଖୁଦ ଅଞ୍ଜୁଳେ ମିଳିବାରୁ, ତା' ଆଣି ବର ହାତରେ ଦେଲେ ।
ସୁଦାମା ସେ ଖୁଦତକ ଛିଣ୍ଡା କନାରେ ବାନ୍ଧି ଗୋଟିଏ ଗୋଟିଏ ଦ୍ୱାରକା
ଆଡ଼କୁ ଚାଲିଲେ ।

ବ୍ରାହ୍ମଣ ଦ୍ୱାରକାକୁ ଗଲେ । ସେ ନ ଖାଇ ନ ପିଇ ଥିବାରୁ
ପଞ୍ଜରା ହାଡ଼ ସବୁ ପଦାକୁ ଦିଶୁଥିଲା । ଗଣ୍ଠି ହାଡ଼ ସବୁ ଫୁଟି ଦିଶୁଥିଲା ।
ଆଖି ଦିଓଟି ଯାଇ ଖୋଲ ଭିତରେ ପଶି ଯାଇଥିଲା । ଗାଲ ଦୁଇଟି ଅଁାକୁଅ
ହୋଇ ଯାଇଥିଲା । ପେଟଟି ଯାଇ ପିଠିରେ ଲାଗିଥିଲା । ଏପରି ହେଲେ
ମଧ୍ୟ ଆଜି ତାଙ୍କର ବଡ଼ ଆନନ୍ଦ—ସେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଦେଖିବେ,
ତାଙ୍କ ସାଥିରେ କଥାବାର୍ତ୍ତା କରିବେ ।

ସେ ଶ୍ରୀକୃଷ୍ଣଙ୍କ ନଗରର ସିଂହଦ୍ୱାର ପାଖରେ ଠିଆ ହେଲେ ।
ଦ୍ୱାରୀମାନେ ତାଙ୍କୁ ଦେଖି ପଚାରିଲେ, 'ହେ ବ୍ରାହ୍ମଣ, ତୁମେ କିଏ ?

କେଉଁଆଡ଼େ ଆସିଲ ?' ସେ ବୋଇଲେ, 'ମୁଁ ସୁଦାମା, ଶ୍ରୀକୃଷ୍ଣଙ୍କ ପାଠ ପଢ଼ା ସାଥି, ତାଙ୍କୁ ଦେଖିବାପାଇଁ ଆସିଛି—ଦୟା କରି ଟିକିଏ ଜଣାଇ ଦିଅ ।' ଏହା ଶୁଣି ଜଣେ ଚପରାଶି କୃଷ୍ଣଙ୍କ ପାଖକୁ ଗଲା । କୃଷ୍ଣ ସେତେବେଳେ ରାଣୀଙ୍କ ଉଆସରେ ଥିଲେ ।

ଶ୍ରୀକୃଷ୍ଣ ରତ୍ନପଲଙ୍କ ଉପରେ ବସିଛନ୍ତି । ଘରଟି ଦାଉ ଦାଉ ଦିଶୁଛି; ସୁଗନ୍ଧରେ ଘରଟି ମହକ ଉଠୁଛି । ତାଙ୍କର ଭାର୍ଯ୍ୟା ଠିଆ ହୋଇ, ଚଅଁର ପକାଉଛନ୍ତି । ଦାସୀମାନଙ୍କ ମଧ୍ୟରୁ କିଏ ଶ୍ରୀକୃଷ୍ଣଙ୍କ ଦେହରେ ଫୁଲ ଲଗାଇ ଦେଉଚି, କିଏ ତାଙ୍କ ପାଇଁ ପାନ ଭାଙ୍ଗି ଦେଉଚି ।

ଦ୍ୱାରୀକୁ ଦେଖି ଶ୍ରୀକୃଷ୍ଣ ପଚାରିଲେ, 'କହୋ ! କି ସମାଚାର ?' ସେ କରପତ୍ର ଯୋଡ଼ି କହିଲା, "ମହାପ୍ରଭୁ, କିଏ ଜଣେ ଗରିବ ବ୍ରାହ୍ମଣ ଚରିକନା ପିନ୍ଧି ଦାଣ୍ଡରେ ଠିଆ ହୋଇଚି—କହୁଚି, 'ମୁଁ ଶ୍ରୀକୃଷ୍ଣଙ୍କର ପିଲାଦିନର ପାଠପଢ଼ା ସାଥି । ମୁଁ ତାଙ୍କୁ ଦେଖିବାକୁ ଆସିଚି ।' ତା' ନା ସୁଦାମା ।"

ସୁଦାମାଙ୍କର ନା' ଶୁଣିବାକ୍ଷଣି ଶ୍ରୀକୃଷ୍ଣ ଧଡପଡ଼ ହୋଇ ପଲଙ୍କରୁ ଉଠି ସିଂହଦ୍ୱାରକୁ ଧାଇଁଗଲେ । ସୁଦାମାଙ୍କୁ କୁଣ୍ଢେଇ ପକାଇ ବଡ଼ ଆଦରରେ ଅନ୍ତଃପୁରକୁ ନେଇଗଲେ । ତାଙ୍କୁ ପଲଙ୍କ ଉପରେ ବସାଇଲେ । ଆପେ ପାଣି ଆଣି ତାଙ୍କ ଗୋଡ଼ ଧୋଇ ନିଜର ପାଟଲୁଗାରେ ପୋଛି ଦେଲେ ।

ତାଙ୍କ ଦେହରୁ ଛିଣ୍ଡା କନା ସବୁ କାଢ଼ି ପକାଇଲେ । ପିନ୍ଧିବାକୁ ପାଟଲୁଗାଟିଏ ଦେଲେ । ଆପେ ସୁଦାମାଙ୍କ ଦେହରେ ଚନ୍ଦନ କର୍ପୂର ବୋଳି ଦେଲେ । ତର ତର ହୋଇ ପାନ ଭାଙ୍ଗି ଆଣି ଦେଲେ । ନିଜେ



ତାଙ୍କ ଗୋଡ଼ ହାତ ସବୁ ଚପାଚପି କରିଦେଲେ । ଏ ସବୁ ଦେଖି ପାଖରେ ଠିଆ ହୋଇଥିବା ମାଇକିନା ଆଉ ଅଣ୍ଡିରମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ସୁଦାମାଙ୍କୁ ବଡ଼ ଭଲ ଲାଗିଲା । ତାଙ୍କ ଆନନ୍ଦର ଆଉ ସୀମା ରହିଲା ନାହିଁ । ମାତ୍ର କହିବାକୁ ତାଙ୍କୁ ଆଉ କଥା ବଳିଲା ନାହିଁ ।

ଶ୍ରୀକୃଷ୍ଣ ତାଙ୍କର ପିଲ ଦିନ ସବୁ ପଚାରିଲେ, ପିଲାଦିନେ ସେମାନେ ଗୁରୁ-ଘରେ କିପରି ପଢ଼ାପଢ଼ି କରୁଥିଲେ, ଗୁରୁଙ୍କ କଥା ମାନି କିପରି ସବୁ କାମ କରୁଥିଲେ, ଏକଥା ମନେ ପକାଇ ଦେଲେ । ପିଲାଦିନର ଆଉ ଆଉ କେତେ କଥା କହିଲେ ।

ଶ୍ରୀକୃଷ୍ଣଙ୍କ କଥା ଶୁଣି ସୁଦାମା ଆନନ୍ଦରେ ଗଦ୍‌ଗଦ ହୋଇ କହିଲେ, 'ଭଗବାନ୍, ଯେ ତୁମ ସଙ୍ଗେ ଦିନେ ହେଲେ ରହିଛି, ବୁଲି ବୁଲି ଖେଳ କୁଦ କରିଛି—ସେ ସବୁ ଜାଣିଛି । ମୋ ପୂର୍ବ ଭାଗ୍ୟରୁ ବହୁତ ଦିନକେ ତମକୁ ଆଜି ଦେଖିଲି ।'

ଇମିତି କଥାବାର୍ତ୍ତା ହେଉ ହେଉ, ସୁଦାମାଙ୍କ ଖୁଦବୁଜୁଲାଟି ଉପରେ ଶ୍ରୀକୃଷ୍ଣଙ୍କର ଆଖି ପଡ଼ିଲା । ସେ ହସି ହସି କୌତୁକରେ କହିଲେ, 'ଏତେ କାଳକେ ଆସିଛ, ମୋ ପାଇଁ କଅଣ ଆଣିଛ ?'

ଏହା ଶୁଣି ସୁଦାମାଙ୍କୁ ଭାରି ଲାଜ ମାଡ଼ିଲା । ସେ ଖୁଦବୁଜୁଲାଟିକୁ ଚାହିଁ ମୁଣ୍ଡ ପୋତି ଦେଲେ । ଶ୍ରୀକୃଷ୍ଣ ତାଙ୍କ ମନ କଥା ଠଉରେଇ ନେଲେ । ବୁଜୁଲା ଫିଟାଇ ମୁଠେ ଖୁଦ ବଡ଼ ଆନନ୍ଦରେ ଖାଇଲେ । ସୁଦାମା କାବା ହୋଇ ଚାହିଁଛନ୍ତି । ଶ୍ରୀକୃଷ୍ଣ ଖାଇବାପାଇଁ ଆଉ ମୁଠାଏ ଖୁଦ ଧରିଲେ । ଏହା ଦେଖି ରୁକ୍ମଣୀ ଧାଇଁ ଯାଇ ଶ୍ରୀକୃଷ୍ଣଙ୍କ ହାତ ଧରି ପକାଇ କହିଲେ, 'ଭଗବାନ୍ ତମେ ଯୋ ମୁଠାକ ଖୁଦ ଖାଇଛ, ସେଥିରେ ଏ ବ୍ରାହ୍ମଣଙ୍କର ଇହପର ସବୁ ମଙ୍ଗଳ ହୋଇ ସାରିଛି—ସେ ସବୁ ସମ୍ପତ୍ତି ପାଇଛନ୍ତି । ଆଉ ମୁଠାଏ ଖାଇଲେ ଆମେ ତାଙ୍କ ପାଦତଳେ ରହିବୁ କିନା ! ଏଥର ହେଲେ ବନ୍ଦ କର । ବ୍ରାହ୍ମଣଙ୍କର ଆଉ କିଛି ଲୋଡ଼ା ନାହିଁ ।'

ସୁଦାମାଙ୍କ କାନରେ ଏ ସବୁ କଥା ପଡ଼ଲା ନାହିଁ । ତାଙ୍କର ମନ ଜ୍ଞାନ ସବୁ ଶ୍ରୀକୃଷ୍ଣଙ୍କଠାରେ ଲାଖିଗଲା—ଆଉ କଛି ଦେଖି ପାରଲେ ନାହିଁ କି ଶୁଣି ପାରିଲେ ନାହିଁ । ଶ୍ରୀକୃଷ୍ଣଙ୍କ ସାଥିରେ ଇମିତ ସୁଖ ଆନନ୍ଦରେ ସ୍ତ୍ରିଦିନ କଟାଇଲେ । ତହିଁ ଆରଦିନ ସକାଳେ କୃଷ୍ଣଙ୍କଠାରୁ ବିଦା ନେଇ ଘରକୁ ବାହୁଡ଼ିଲେ ।

ଯାଉଁ ଯାଉଁ ବାଟରେ ତାଙ୍କ ଭାର୍ଯ୍ୟାଙ୍କ କଥା ମନେ ପଡ଼ିଲା । ସେ ପଚାରିଲେ କ'ଣ କହିବେ—କଛି ଠିକ୍ କରିପାରିଲେ ନାହିଁ । ଲାଜ ଲାଜ ହୋଇ ଧୀରେ ଧୀରେ ଗାଁ ଭିତରେ ପଶିଲେ । ଘର ପାଖକୁ ଯାଇ ଦେଖିଲେ ଯେ, ଆଉ ସେ ଆଗର ଘର ନାହିଁ; ସାତପୁର କୋଠାଘର ଛିଡ଼ା ହୋଇଛି । ଦେଖିଲେ ଉପରକୁ ଆଖି ପାଉ ନାହିଁ । କାନ୍ଥ, ବାଡ଼, ତଳ ସବୁ ମଲମଲ ପଥରରେ ତିଆରି । ସେ ଘର ଭିତରେ କେତେ ଦାସ ଦାସୀ ଯିବା ଆସିବା କରୁଛନ୍ତି । ସମସ୍ତେ ଭଲ ଲୁଗା, ସୁନ୍ଦର ଅଲଙ୍କାର ପିନ୍ଧିଛନ୍ତି । ଏହା ଦେଖି ବ୍ରାହ୍ମଣଙ୍କ ଆଉ ବୁଦ୍ଧି ଦଶିଲା ନାହିଁ । ସେ ଥଙ୍ଗେଇ ଥଙ୍ଗେଇ ଠିଆ ହେଉଛନ୍ତି । ତାଙ୍କର ଘରକୁ'ଠେ, କୁ'ଆଡ଼େ ଯିବେ ବିଚାରୁଥାନ୍ତି ।

ଏ ସମୟରେ ବ୍ରାହ୍ମଣୀ ତାଙ୍କୁ ଦେଖି ତରତର ହୋଇ ଆସି ତାଙ୍କୁ ଭିତରକୁ ନେଇଗଲେ । ତାଙ୍କର ଗୋଡ଼ ଧୋଇ ଦେଇ ସେ ପାଣି ସେବା କଲେ । ପୁଣି ତାଙ୍କୁ ନେଇ ହାତୀ ଦାନ୍ତର ପଲଙ୍କ ଉପରେ ବସାଇଲେ । ବ୍ରାହ୍ମଣଙ୍କୁ ଏଇ ସବୁ କଥା ଆଶ୍ଚର୍ଯ୍ୟ ଲାଗୁଥାଏ । ସେ ବହୁତ କଥା ପଚାରିଲେ । ପଛକୁ ଠିକ୍ କଲେ, ଶ୍ରୀକୃଷ୍ଣଙ୍କ ଦୟାରୁ ଇମିତ ସବୁ ହୋଇଛି । ସେଦିନଠୁଁ ତାଙ୍କ ମନ ପ୍ରଭୁଙ୍କ ପାଖରେ ଅଧିକ ଲାଖିଗଲା । ଧନ, ରତ୍ନ, ସୁଖ, ସମ୍ପତ୍ତି ସବୁ ପାସୋରି ସବୁବେଳେ ଭଗବାନଙ୍କୁ ଭଜିଲେ ।

ତୁ ନାଥ ପରମ ଦୟାଳୁ,
ଭକ୍ତର ବାଞ୍ଛା କଳ୍ପତରୁ ।।

---

# ବକାସୁର ବଧ

ଦିନେ କୃଷ୍ଣ ଓ ଗୌଡ଼ ପିଲାମାନେ ଖେଳି ଖେଳି ହାଲିଆ ହୋଇଗଲେ । ସମସ୍ତଙ୍କର ଶୋଷ ହେଲା । ପାଣି ପିଇବାକୁ ଗଲେ । ପୋଖରୀ ହୁଡ଼ାରେ ଯାଇ ଦେଖିଲେ, ବଡ଼ ବଗଟିଏ ଭୂଇଁରେ ବସିଛି । ବଗଟି କୃଷ୍ଣଙ୍କୁ ଦେଖିବାକ୍ଷଣି ତାଙ୍କୁ ଠାକୋକନା ଗିଳିଦେଲା । ଗୌଡ଼ ପିଲାମାନେ ଏଣେ କୃଷ୍ଣଙ୍କୁ ନ ଦେଖି ଭୋ ଭୋ ରଡ଼ି ଛାଡ଼ିଲେ । କୃଷ୍ଣ ବଗର ପେଟ ଭିତରେ ରହି ସାଥି ପିଲାଙ୍କର କାନ୍ଦ ଶୁଣି ପାରିଲେ । ତାଙ୍କ ମନରେ ଭାରି କଷ୍ଟ ହେଲା । ସେ ସେହିକ୍ଷଣି ନିଆଁ ପରି ତାତି ଗଲେ । ବଗ ସେ ତାତି ସମ୍ଭାଳି ପାରିଲା ନାହିଁ । ଭକ୍ କରି ବାନ୍ତି କରି ପକାଇଲା । କୃଷ୍ଣ ଭୁଣ୍ଡରୁ ଖସି ପଡ଼ିବାର ଅସୁର ଦେଖିଲା । ସେ ଥଣ୍ଟରେ କୃଷ୍ଣଙ୍କୁ ଖଣ୍ଡ ଖଣ୍ଡ କରି ମାରି ପକାଇବାକୁ ଠିକ୍ କଲା । ଏଡ଼ିକ ଆଁ କରି କୃଷ୍ଣଙ୍କୁ ଆଡ଼େ ଯାଇଁ ଆଇଲା ।

ତାହା ଦେଖି କୃଷ୍ଣ ଦୁଇ ହାତରେ ବଗ ଥଣ୍ଟର ଦୁଇ ଫାଳଯାକ ଧରି ଜୋରରେ ଚିରି ପକାଇଲେ । ସେ ବଗଟା ଠିକ୍ ଦୁଇ ଫାଳ ହୋଇଗଲା । ମଲାବେଳେ ଦେଖାଗଲା, ସେ ଆଉ ବଗ ନୁହେଁ—ଏଡ଼େ ବଡ଼ ଅସୁରଟାଏ । ବକ ବେଶରେ କୃଷ୍ଣଙ୍କୁ ମାରିବାପାଇଁ କଂସ ସେ ଅସୁରକୁ ପଠାଇଥିଲା । ଏବେ ଅସୁର ମରିବାର ଦେଖି ଗୌଡ଼ ପିଲେ ହେଣ୍ଡି ମାରି କୃଷ୍ଣଙ୍କ ସଙ୍ଗେ ଘରକୁ ଫେରିଲେ ।

'କେତେ କେତେ ବିପଦ ନ ପଡ଼ିଲା,
କୃଷ୍ଣ ଥିଲାକୁ କିଛି ନ ବାଧିଲା ।'

---

# ମୃଗୁଣୀ ଉଦ୍ଧାର

ସୁବାହୁ ବୋଲି ଗୋଟିଏ ବଡ଼ ବଣ । ସେଥିରେ ଅନେକ ଜନ୍ତୁ ଥିଲେ । ଥରେ ଗୋଟିଏ ଗର୍ଭବତୀ ହରିଣୀ ତାର ଦୁଇଟି ପିଲା ସାଥିରେ ଧରି ସେ ବଣରେ ଚରୁଥିଲା । ଜଣେ ବାଣୁଆ ଏହା ଦେଖିଲା । ସେ ବଣର ପଛପଖାରେ ନିଆଁ ଲଗାଇ ଦେଲା; ଦୁଇ ପାଖରେ ଜାଲ ବାଡ଼ ବାନ୍ଧି ଦେଲା । ନିଜେ ଆଗ ପାଖି ଧନୁ ଧରି ଯମ ପରି ଠିଆ ହେଲା, ଆଉ ତା' କୁକୁରଟାକୁ ଧର ଧର ବୋଲି ହରିଣୀ ଆଡ଼େ ଛାଡ଼ିଦେଲା ।

ଏହା ଦେଖି ହରିଣୀର ଛାତି ଦାଉଁ ଦାଉଁ ହେଲା । ତାହାକୁ ଚଳପ୍ରଚଳ ଯାଏଁ ଦେହଟାଯାକ ଥରିଗଲା । ତଳେ ଅଚେତନ ହୋଇ ପଡ଼ିଗଲା । କିଛିକ୍ଷଣ ପରେ ଚେତାପାଇ ଈଶ୍ବରଙ୍କୁ ଡ଼ାକି ପକାଇଲା, "ହେ ଆର୍ତ୍ତତ୍ରାଣ ! ବିପଦଭଞ୍ଜନ ହରି—ଏ ବିପତ୍ତିରୁ ରକ୍ଷା କର—କାହାର କେବେ ଦୁଃଖ ନ ସହିପାର । ରାବଣକୁ ମାରି ସୀତା ଉଦ୍ଧାରିଲ, ପ୍ରହ୍ଲାଦ ଲାଗି ହିରଣ୍ୟ ବିଦାରିଲ । କୁମ୍ଭୀରକୁ ଛେଦି ହାତୀକୁ ନିସ୍ତାରିଲ । ପ୍ରଭୁ ହେ ! ତୁମ ଛଡ଼ା ମୋର ଆଉ କିଏ ଅଛି ? ମୁଁ କାହାକୁ ଡାକିବି ? ତୁମେ ରକ୍ଷା ନ କଲେ ମୁଁ ପିଲାଛିଲା ଧରି ମଲି ! ରଖ ହେ ଦୀନବନ୍ଧୁ !" ଇମିତି ଡାକି ପକାଇ ଆଉ ଥରେ ମୂର୍ଚ୍ଛା ଗଲା ।

ହରିଣୀର କାତର ଡାକ ଈଶ୍ବରଙ୍କ ଆସନକୁ ଟଳମଳ କରି ପକାଇଲା । ପ୍ରଭୁଙ୍କ ଆଜ୍ଞାରେ ସେଇକ୍ଷଣି ବଣରେ ବଜ୍ର ବର୍ଷା ହେଲା । ନିଆଁ ଲିଭିଗଲା । ପବନରେ ଜାଲ ବାଡ଼ ଉଡ଼ିଗଲା । ବଜ୍ର ପଡ଼ି କୁକୁର ମଲା । ବାଣୁଆକୁ ସାପ ଗିଳିଲା । ମୃଗୁଣୀ ଚେତା ପାଇ, ବିପଦ ସବୁ ଘୁଞ୍ଚିବାର ଦେଖି ଭାରି ସୁଖୀ ହେଲା । କହିଲା, "ଧନ୍ୟ ଧନ୍ୟ ମହାପ୍ରଭୁ, ଧନ୍ୟ ତୁମର ମହିମା ।" ପିଲାମାନଙ୍କୁ ସାଥିରେ ଧରି ସେଠାରୁ ଖସିଗଲା ।



ହରି ରଖେ ମାରେ କିଏ ?
ହରି ମାରେ ରଖେ କିଏ ?

# ରାମଙ୍କ ସଭାରେ କୁକୁରର ବିଚାର

ରାମଚନ୍ଦ୍ର ଅଯୋଧ୍ୟାର ରାଜା । ସେ ବଡ଼ ଦୟାଳୁ । ତାଙ୍କ ରାଜ୍ୟର ପ୍ରଜା, ପଶୁ, ପକ୍ଷୀ ସମସ୍ତେ ତାଙ୍କଠାରୁ ନ୍ୟାୟ ପାଉଥିଲେ ।

ଦିନେ ରାମଚନ୍ଦ୍ର, ଋଷି, ବ୍ରାହ୍ମଣ ଓ ମନ୍ତ୍ରୀମାନଙ୍କ ସଙ୍ଗରେ ବସି ନ୍ୟାୟ ବିଚାର କରୁଛନ୍ତି, ଏ ସମୟରେ ଗୋଟିଏ କୁକୁର ସେଠାରେ ଆସି ଠିଆ ହେଲା । ତାର ମୁଣ୍ଡ ଫାଟି ଦନଦନଆଁ ହୋଇ ଯାଇଛି । ରକ୍ତରେ ଦେହ ମୁଣ୍ଡ ସବୁ ଭିଜି ଯାଇଛି । ଆଖିରୁ ଧାର ଧାର ଲୁହ ଗଡ଼ି ପଡ଼ୁଛି । ଏହା ଦେଖି ଦୟାଳୁ ରାମଚନ୍ଦ୍ରଙ୍କ ପ୍ରାଣ ବିକଳ ହେଲା । ସେ କାନ୍ଦ କାନ୍ଦ ହୋଇ ପଚାରିଲେ, 'କିଏ ତତେ ଏ କଷ୍ଟ ଦେଇଚ ?' କୁକୁରଟି ବଡ଼ କଷ୍ଟରେ ବୋଇଲା, "ପ୍ରଭୋ ! ମୁଁ ଖରାବେଳେ ବାଟରେ ଠିଆ ହୋଇ-ଥିଲି, ଗୋଟିଏ ବ୍ରାହ୍ମଣ ବାଡ଼ିରେ ମୋ ମୁଣ୍ଡକୁ ପିଟି ରକ୍ତ କାଢ଼ି ଦେଲା । ମୁଁ କିଛି ଦୋଷ କରି ନାହିଁ, ଆପଣ ଏହାର ବିଚାର କରନ୍ତୁ ।"

ରାମଚନ୍ଦ୍ର ସେଇକ୍ଷଣି ବ୍ରାହ୍ମଣକୁ ଡକାଇ ପଚାରିଲେ, 'କିହୋ ବ୍ରାହ୍ମଣ ! ଏ କୁକୁର ତମର କି ହାନି କଲା ବୋଲି ଏହାର ମୁଣ୍ଡ ଫଟାଇଦେଲ ?' ବ୍ରାହ୍ମଣ ହାତ ଯୋଡ଼ି ଭୟରେ ଥରି ଥରି କହିଲା, "ମହାରାଜ ମୁଁ ବଡ଼ ଗରିବ । ମତେ ମିଶାଇ ଆମ ଘରେ ସବୁ ପାଞ୍ଚଜଣ ଅଛୁଁ । ମୁଁ ଆଜ ଠିକ୍ ସମୟରେ ଭିକ ମାଗି ଯାଇ ନ ଥିବାରୁ ମତେ କିଛି ଭିକ ମିଳିଲା ନାହିଁ । ଖରାରେ ବୁଲି ବୁଲି ହାଲିଆ ହୋଇଥିଲି । ଭୋକ ହେଉଥିବାରୁ ମନରେ ବଡ଼ କଷ୍ଟ ହୋଉଥିଲା । ଘରକୁ ଗଲେ ପିଲାମାନଙ୍କ ଭୋକ ବିକଳ ଦେଖି କ'ଣ କରିବି ବୋଲି ଭାବୁଥିଲି । ଏ ସମୟରେ ବାଟରେ ଏ କୁକୁରଟି ହାବୁଡ଼ିଲା । ତେଣୁ ବିରକ୍ତ ହୋଇ ଏହାକୁ ମାରିଲି ।"

ଏହା ଶୁଣି ସଭାର ଲୋକେ କହିଲେ, "କୁକୁରର କିଛି ଦୋଷ ନାହିଁ । ବ୍ରାହ୍ମଣ ଯୋଡ଼ିଏ ଦୋଷ କରିଛି, ଠିକ୍ ସମୟରେ ଭିକ ମାଗି ନ ଯିବା ପ୍ରଥମ ଦୋଷ; କାରଣ ନ ଥାଇ କୁକୁରକୁ ମାରିବା ଦ୍ୱିତୀୟ ଦୋଷ । ଏଣୁ ଯାକୁ କଠିନ ଦଣ୍ଡ ଦେବା ଉଚିତ ।"

କୁକୁର ଏହା ଶୁଣି କହିଲା, "ମୁଁ ତମମାନଙ୍କୁ ଗୋଟିଏ ପ୍ରାର୍ଥନା କରୁଛି; ଏ ବ୍ରାହ୍ମଣକୁ କଠିନ ଦଣ୍ଡ ନ ଦେଇ ତା'କୁ କୁ'ହେଲେ କୂଳର ଅଧିକାରୀ କରିଦିଅ ।" ଏହା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, 'କ ଏପରି କାହିଁକି କହୁଚୁ ?' କୁକୁର କହିଲା, 'ଗଲା ଜନ୍ମରେ ମୁଁ ଗୋଟିଏ କୂଳର ଅଧିକାରୀ ହୋଇଥିଲି । ମତେ ସମସ୍ତେ ମାନୁଥିଲେ । ଧର୍ମ କାର୍ଯ୍ୟ ପାଇଁ ମୋ ପାଖରେ ପଇସାପତ୍ର ରହୁଥିଲା ମୁଁ ସେଥିରୁ ପଇସାଟିଏ ହେଲେ ଛୁଉଁ ନ ଥାଏ । ମୁଁ ସବୁବେଳେ ଦେବତା, ବ୍ରାହ୍ମଣ, ଅତିଥିସେବା କରୁଥିଲି । ସିମିତି ହେଲେ ମଧ୍ୟ ଗୋଟିଏ ସାମାନ୍ୟ ଦୋଷ କରିବାରୁ ମୁଁ ଏ ଜନ୍ମରେ କୁକୁର ହେଲି । ତେଣୁ ଏହି ରାଗୀ, ଲୋଭୀ ବ୍ରାହ୍ମଣ କୁ'ହେଲେ କୂଳର ଅଧିକାରୀ ହେଲେ ମୋଠୁଁ ବଳି କଷ୍ଟ ଭୋଗିବ ।"

ଏହା ଶୁଣି ସମସ୍ତେ ଏକସ୍ୱରରେ, 'ସେହିପରି ହେଉ' ବୋଲି କହିଲେ । ରାମଚନ୍ଦ୍ର ମଧ୍ୟ 'ତଥାସ୍ତୁ' ବୋଇଲେ ।'

ନ୍ୟାୟ ବିଚାରରେ ସମସ୍ତେ ସମାନ ।

# ବିକ୍ରମାଦିତ୍ୟ ଓ ଦେବୀମନ୍ଦିର

ସମୁଦ୍ର ମଝିରେ ଗୋଟିଏ ପର୍ବତ । ତହିଁ ଉପରେ ଗୋଟିଏ ଦେଉଳ । ସେହି ଦେଉଳରେ ଭୁବନେଶ୍ୱରୀ ଦେବୀ ବିଜେ କରିଛନ୍ତି ।

ବିକ୍ରମାଦିତ୍ୟ ବୋଲି ଜଣେ ବଡ଼ ରାଜା ଥିଲେ । ଦିନେ ସେ ବୋଇତରେ ବସି ସମୁଦ୍ର ଉପରେ ଯାଉଥିଲେ । ଯାଉଁ ଯାଉଁ ସେହି



ଦେଉଳଟି ତାଙ୍କ ଆଖିରେ ପଡ଼ିଲା । ସେ ତାହା ଭିତରକୁ ଯାଇ ଦେଖିବାକୁ ମନେ ମନେ କଲେ । ବୋଇତରୁ ଓହ୍ଲାଇ ପର୍ବତ ଉପରକୁ ଉଠିଲେ ।

ସେ ଦେଖିଲେ, ଯୋଡ଼ିଏ ଲୋକ ମରି ରକ୍ତ ବନ୍ଦବନ୍ଦଆ ହୋଇ ଦେବୀଙ୍କ ଆଗରେ ପଡ଼ିଛନ୍ତି । ଏହା ଦେଖି ସେ ବଡ଼ ଆଶ୍ଚର୍ଯ୍ୟ ହେଲେ । ବିଚାରିଲେ ଯୋଡ଼ାକ ମଣିଷ ମରି ପଡ଼ିଛନ୍ତି । ଦେଉଳର ଚାରିପାଖ ଭଲ ନିଖାରି ନିଖାରି ଦେଖିଲେ । 'କୋଣ୍ଡେଲେ ଧର୍ମାତ୍ମା ହାଣି ହୋଇ ତା' ରକ୍ତରେ ଦେବୀଙ୍କୁ ପୂଜା କଲେ, ଏ ଦୁଇଜଣ ବଞ୍ଚିବେ ।' ଇମିତି କାନ୍ଥରେ ଲେଖାଥିଲା । ଏହା ପଢ଼ି ରାଜାଙ୍କ ମନରେ ଦୟା ବସିଲା । ଜୀବନ ନଷ୍ଟେଁ ତ ଦିନେ ଯିବ । ମାତ୍ର ପର ଉପକାରରେ ଲାଗିଲେ ମହାପୁଣ୍ୟ, ଏହା ବିଚାରି ରାଜା ଦେବୀଙ୍କୁ ସୁମରଣା କଲେ । ଖଣ୍ଡା ଟେକି ନିଜ ବେକରେ ଲଗାଇଛନ୍ତି କି ନାହିଁ, ଦେବୀ ଆଗରେ ଛିଡ଼ା ହୋଇଗଲେ, ତାଙ୍କ ହାତରୁ ଖଣ୍ଡାଟି ଛଡ଼ାଇ ନେଇ କହିଲେ, 'ବାବୁ, ମୁଁ ତୋ କାର୍ଯ୍ୟରେ ବଡ଼ ସନ୍ତୁଷ୍ଟ ହୋଇଛି—କି ବର ଆଶୁଛୁ ମାଗ ।' ରାଜା କହିଲେ, 'ମା, ମୋ ଉପରେ ଯଦି ତୁମର ଦୟା ହେଲା, ତେବେ ଏ ମାଇ ଅଣ୍ଡିରା ଦୁହିଁଙ୍କୁ ବଞ୍ଚାଇଦିଅ ।' ଦେବୀ ତଥାସ୍ତୁ ବୋଲି ଅନ୍ତର୍ଦ୍ଧାନ ହେଲେ । ସେ ଦୁଇଜଣ ଉଠି ବସିଲେ । ତା ଉତ୍ତାରୁ ରାଜା ସେ ଦୁହିଁଙ୍କୁ ବୋଇତରେ ବସାଇ ତାଙ୍କ ରାଜ୍ୟକୁ ନେଇଗଲେ ।

ସମାପ୍ତ

---

କଟକ ଦାସପ୍ରେସରେ ଶ୍ରୀ ହରମୋହନ ଦାସଙ୍କ ଦ୍ୱାରା ମେସିନ୍‌ଯନ୍ତ୍ରେ ମୁଦ୍ରିତ ।

# ଷ୍ଟୋର ଗ୍ରନ୍ଥମାଳା



| | | | |
|---|---|---|---|
| ୧ | ଶିଶୁଭକ୍ତ ( ୨ୟ ସଂସ୍କରଣ ) | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ | ଟ ୦ ୪ |
| ୨ | ପଦ୍ମଜା ( ଉପନ୍ୟାସ ) | ,, | ଟ ୦ ୴ |
| ୩ | ପ୍ରଣୟପ୍ରବାହ ,, | ,, | ଟ ୧ । |
| ୪ | କମଳକୁମାରୀ ,, | ,, | ଟ ୧ ୪ |
| ୫ | ହିତକଥା ୧ମ ଭାଗ (ମିତ୍ର ଲାଭ) | ,, | ଟ ୦ ।୵ |
| ୬ | ,, ୨ୟ ଭାଗ (ସୁହୃଦ୍‌ଭେଦ) | ,, | ଟ ୦ ୪ |
| ୭ | ,, ୩ୟ ଭାଗ ( ବିଗ୍ରହ ) | ,, | ଟ ୦ ୪ |
| ୮ | ,, ୪ର୍ଥ ଭାଗ ( ସନ୍ଧି ) | ,, | ( ଯନ୍ତ୍ରସ୍ଥ ) |
| ୯ | ଦ୍ରୌପଦୀ | ଶ୍ରୀ ବାସୁଦେବ ମହାପାତ୍ର | ଟ ୦ ୪ |
| ୧୦ | ସଂଯୁକ୍ତା | ଶ୍ରୀ ଦୟାନିଧି ମିଶ୍ର ବି.ଏ. ଏଲ.ଟି | ଟ ୦ ୪ |
| ୧୧ | ରାଣା ପ୍ରତାପ ସିଂହ | ,, | ଟ ୦ ୴ |
| ୧୨ | ବତିଶ ସିଂହାସନ | ଶ୍ରୀ ଗଣପତି ପତି | ଟ ୦ ୪୵ |
| ୧୩ | ଭୀଷ୍ମ | ଶ୍ରୀ ବନମାଳୀ ମିଶ୍ର କବିବଲ୍ଲଭ | ଟ ୦ ୪ |
| ୧୪ | ଶ୍ରୀ ଚୈତନ୍ୟ ଦେବ | ଶ୍ରୀ ଗଣପତି ପତି | ଟ ୦ ୪ |
| ୧୫ | ସାହିତ୍ୟ ସଂଗ୍ରହ ୧ମ ଭାଗ ଓଡ଼ିଶାର ବିଭିନ୍ନ ଲେଖକ ଓ କବିମାନଙ୍କ କବିତା, ଗଳ୍ପ ପ୍ରବନ୍ଧାଦିରେ ପୂର୍ଣ୍ଣ | | ଟ ୦ ୪ |
| ୧୬ | ସାହିତ୍ୟ ସଂଗ୍ରହ ୨ୟ ଭାଗ ଓଡ଼ିଶାର ବିଭିନ୍ନ ଲେଖକ ଓ କବିମାନଙ୍କ କବିତା, ଗଳ୍ପ ପ୍ରବନ୍ଧାଦିରେ ପୂର୍ଣ୍ଣ | | ଟ ୦ ୴୵ |

ଷ୍ଟୁଡେଣ୍ଟସ୍ ଷ୍ଟୋର,
ବ୍ରହ୍ମପୁର ( ଗଞ୍ଜାମ )